ISSN: 2456-9194, Vol. I, Issue. III, 2017


# ପ୍ରତ୍ୟୟ

**(Journal of Odia Language, Culture and Science)**

JournalHomepage:http://cphfs.in/research.php




# କଥାକାର ରାଜକିଶୋର ପଟ୍ଟନାୟକ


ଡକ୍ଟର ବିଷ୍ଣୁପ୍ରିୟା ଓତା

ପ୍ରାଧ୍ୟାପିକା, ସ୍ନାତକୋତ୍ତର ଓଡ଼ିଆ ବିଭାଗ,

ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ଭୁବନେଶ୍ୱର – ୭୫୧୦୦୪

bpotta@gmail.com



***ସଂକ୍ଷିପ୍ତ ପରିଚୟ*** - *କଥାକାର ରାଜକିଶୋର ପଟ୍ଟନାୟକ ସବୁବେଳେ ସ୍ୱାଧୀନ ଓ ରୋକ୍‌ଠୋକ୍ । ୧୯୩୭ ମସିହାରେ ରେଭେନ୍ସା କଲେଜର ଛାତ୍ର ଥିଲାବେଳେ ରାଜକିଶୋର ପଟ୍ଟନାୟକଙ୍କର ପ୍ରଥମ ଉପନ୍ୟାସ 'ମୋର ଚିଠି ଫାଇଲ୍' ନବଭାରତରେ ଧାରାବାହିକ ଭାବରେ ପ୍ରକାଶ ପାଇଥିଲା । ଏହା ପରେପରେ ଜୀବନକାଳ ଭିତରେ ୧୯୪୮ରେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପ୍ରାର୍ଥୀ, ୧୯୬୫ରେ ରାଜ୍ୟସଭା ପାଇଁ ପ୍ରାର୍ଥୀ, ୧୯୬୩ରେ ସାହିତ୍ୟ ଏକାଡ଼େମୀର ସଦସ୍ୟ ଓ ୧୯୬୪ରୁ ୬୫ ପର୍ଯ୍ୟନ୍ତ ସ୍ୱତନ୍ତ୍ର ଦଳର ଅଫିସ୍ ସେକ୍ରେଟାରୀ ଭଳି ଅନେକ ଘଟଣାକୁ ଭେଟିଛନ୍ତି । ତେବେ, ମଣିଷର ଚାରିତ୍ରିକତା ସହ ମାନବେତର ଅସହାୟତାର ତୁଳନାତ୍ମକ ବିଚାର ତାଙ୍କ କଥାସାହିତ୍ୟର ଆତ୍ମିକ ବିଭବ । ୧୯୪୩ ମସିହାରେ 'ପଞ୍ଜୁରୀ ପକ୍ଷୀ' ନାମରେ ତାଙ୍କର ଉପନ୍ୟାସ ବୌଦ୍ଧିକ ବିଶ୍ଲେଷଣର ପନ୍ଥା ଏଡ଼ାଇ ବ୍ୟଙ୍ଗାତ୍ମକ ଶୈଳୀକୁ ପ୍ରାଧାନ୍ୟ ଦେଇଛି । 'ନୂଆ କଥାପାଇଁ ସଂଗ୍ରାମ କରିବା' ରାଜକିଶୋରଙ୍କ ମନର ଗତି ଓ ଅଭିମୁଖ୍ୟ । ଓଡ଼ିଆଙ୍କର ସାହିତ୍ୟ ଓଡ଼ିଆ ପାଇଁ ହେଉ ଏହାହିଁ କତାକରଙ୍କ କାମନା ଓ ସୃଷ୍ଟିର ଅନ୍ତର୍ବାଣୀ।*



***ପ୍ରମୁଖ ଶବ୍ଦାବଳୀ*** *(Keywords)* - *କଥାସାହିତ୍ୟ, ରାଜିକଶୋର ପଟ୍ଟନାୟକ, ମୋର ଚିଠି ଫାଇଲ୍, ଘାସ, ନିଶାଣଖୁଣ୍ଟ*


ଓଡ଼ିଆ କଥାସାହିତ୍ୟରେ ରାଜିକଶୋର ପଟ୍ଟନାୟକ ବେଶ୍ ଜଣାଶୁଣା ନାଁ । । ସାଧାରଣ ଭାବରେ ସେ ଜଣେ ବ୍ୟକ୍ତି ଭାବରେ ଯେପରି ଭିନ୍ନ ତାଙ୍କ ସାହିତ୍ୟ ମଧ୍ୟ ଭିନ୍ନ ସ୍ୱାଦର । ଓଡ଼ିଶାର ପ୍ରତ୍ୟେକ ସାହିତ୍ୟିକ ଓ ପାଠକ ରାଜକିଶୋର ପଟ୍ଟନାୟକଙ୍କ ସହିତ ବେଶ୍ ପରିଚିତ । ଫକୀରମୋହନଙ୍କ ପରବର୍ତ୍ତୀ ଓଡ଼ିଆ ଗଳ୍ପ ସାହିତ୍ୟ ଯେତେବେଳେ ଅସହାୟ ରୁଗ୍‌ଣ ସେହି ସମୟରେ ରାଜକିଶୋର ପଟ୍ଟନାୟକ ଜଣେ ପ୍ରତିଭାଦୀପ୍ତ ସାହିତ୍ୟିକ ବ୍ୟକ୍ତିତ୍ୱ ଭାବରେ ପ୍ରବେଶ କରନ୍ତି ସାହିତ୍ୟଜଗତରେ । ବିଶେଷକରି ଓଡ଼ିଆ ଗଳ୍ପରେ ବାସ୍ତବ ଅନୁଭୂତିର ନିଚ୍ଛକ ରୂପକାର ଭାବରେ ସେ ପରିଚିତ । ତାଙ୍କ ଚିନ୍ତନର ଏକାଗ୍ରତା ଓ ଲେଖିବାର ଅଭ୍ୟାସ ଏପରି ଯେ, ସେ ଠିଆ ଠିଆ ସାଇକେଲ୍ ସିଟ୍ ଉପରେ ଗପଟିଏ ଆରମ୍ଭ କରି ଶେଷ କରିପାରନ୍ତି - ବାରଘଣ୍ଟାରେ ଦଶଟା ଗପ ଲେଖିପାରନ୍ତି । କୁକୁରଛୁଆ, ଷଣ୍ଢ, ବିଲେଇ ଓ ଆମ୍ବଗଛକୁ ନେଇ ଗଳ୍ପ ଲେଖିପାରନ୍ତି ।

ଫକୀରମୋହନଙ୍କ ପରବର୍ତ୍ତୀ ଓଡ଼ିଆ ଗଳ୍ପସାହିତ୍ୟ ଯେତେବେଳେ ଅସହାୟ ଅବସ୍ଥାରେ, ସେତିକିବେଳେ ରାଜକିଶୋର ପଟ୍ଟନାୟକ ପ୍ରଚଣ୍ଡ ପ୍ରତିଭାଦୀପ୍ତ ସାହିତ୍ୟିକ ବ୍ୟକ୍ତିତ୍ୱ ଭାବରେ ପ୍ରବେଶ କରନ୍ତି ସାହିତ୍ୟ ଜଗତରେ । ରାଜକିଶୋର ପଟ୍ଟନାୟକ ଜଣେ ଅନନ୍ୟ ସାଧାରଣ ବ୍ୟକ୍ତିତ୍ୱ । ସମସ୍ତ ସାହିତ୍ୟିକଙ୍କଠାରୁ ତାଙ୍କର ବ୍ୟକ୍ତିତ୍ୱ ଟିକେ ନିଆରା । ତାଙ୍କ ନିକଟରେ ଦେଖିବାକୁ ମିଳେ ପ୍ରଚଣ୍ଡ ପ୍ରାଣପ୍ରାଚୁର୍ଯ୍ୟ ଓ ଅନନ୍ୟ କର୍ମପ୍ରବଣତା । ସେ ସମୟରେ ତାଙ୍କର କେତୋଟି ଗଳ୍ପ ଓ ଉପନ୍ୟାସ ପ୍ରତିଷ୍ଠିତ ସାହିତ୍ୟ ପତ୍ରିକାର ସମ୍ପାଦକଙ୍କୁ ଚମକାଇ ଦେଇଥିଲା । ଏହି ସମୟଟି ଥିଲା ୧୯୩୭ ମସିହାର କଥା ସେତେବେଳେ ରାଜକିଶୋର ପଟ୍ଟନାୟକ ରେଭେନ୍ସା କଲେଜର ଛାତ୍ର । ତାଙ୍କର ପ୍ରଥମ ଉପନ୍ୟାସ 'ମୋର ଚିଠି ଫାଇଲ୍' ନବଭାରତରେ ଧାରାବାହିକ ଭାବରେ ପ୍ରକାଶ ପାଇଥିଲା । ପରବର୍ତ୍ତୀ କାଳରେ ସେହି ଉପନ୍ୟାସ 'ପଞ୍ଜୁରୀ ପକ୍ଷୀ' ନାମରେ ୧୯୪୩ ମସିହାରେ ଗ୍ରନ୍ଥାକାରରେ ପ୍ରକାଶିତ ହେଲା ।

ତେବେ ସାହିତ୍ୟିକ ରାଜକିଶୋର ଓଡ଼ିଆ ସାହିତ୍ୟରେ ଜଣେ ଭିନ୍ନ ବ୍ୟକ୍ତିତ୍ୱ । ତାଙ୍କର ଜନ୍ମ ସମୟ ଥିଲା ୦୮.୦୪. ୧୯୧୭ ଏବଂ ଭଞ୍ଜନଗରର ରସଲକୁଣ୍ଡାରେ ତାଙ୍କ ନିଜ ଘର । ବାପା ସରକାରୀ ଚାକୀରିଆ ହେତୁ ବାପାଙ୍କ ସହ ବିଭିନ୍ନ ସ୍ଥାନ ନ ବୁଲି ସେ ପରିବାର ସହ କଟକରେ ରହିଲେ କଟକ ରେଭେନ୍ସା କଲେଜିଏଟ୍ ସ୍କୁଲରେ ମାଟ୍ରିକ ପାଶ୍ କରି ବିଜ୍ଞାନର ଛାତ୍ର କେବଳ ନ ଥିଲେ । ଜଣେ ନାଁ ଡାକ ଖେଳାଳୀ ଭାବରେ ବେଶ୍ ପ୍ରତିଷ୍ଠା ଅର୍ଜନ କରିଥିଲେ । କଲେଜର ବାର୍ଷିକ କ୍ରୀଡ଼ା

ପ୍ରତିଯୋଗିତାରେ ସାଇକେଲ ରେସ୍‌ରେ ଦୁଇମାଇଲ୍ ରାସ୍ତାକୁ ଛଅମିନିଟ୍ ମଧ୍ୟରେ ଅତିକ୍ରମ କରି ସାଇକଲେ୍ ରେସ୍‌ରେ ପୂର୍ବ ରେକର୍ଡ଼ ଭାଙ୍ଗିଥିଲେ । ଫୁଟ୍‌ବଲ, ଭଲିବଲ୍ ଓ କ୍ରିକେଟ୍ ସମସ୍ତ ଖେଳରେ ସେ ଜଣେ ଅଭିଜ୍ଞ ଖେଳାଳୀ । କିନ୍ତୁ, ଫୁଟ୍‌ବଲ୍ ଖେଳ ତାଙ୍କର ସବୁଠୁ ପ୍ରିୟ ଖେଳ ଥିଲା । କଲେଜ୍ ଟିମ୍‌ରେ ଯେଉଁ ଏଗାରଜଣ ଖେଳାଳୀ ଥିଲେ ସେମାନଙ୍କ ଭିତରେ ପ୍ରଥମ ଧାଡ଼ିରେ ଥିଲା ରାଜକିଶୋର ପଟ୍ଟନାୟକଙ୍କର ନାଁ । ତେଣୁ, ଖେଳକସରତରେ ଆନନ୍ଦ ଲାଭ କରୁଥିବା ଓ ବେଶ୍ ସୁନାମ ଅର୍ଜନ କରିଥିବା ଖେଳକୁ ଛାଡ଼ି ଧରିଲେ କଲମ । ଲେଖିଲେ ଗଳ୍ପ ଓ ଉପନ୍ୟାସ ସବୁ । ୧୯୩୮ ମସିହାବେଳକୁ ଜଣେ ପ୍ରତିଷ୍ଠିତ ଗଳ୍ପଲେଖକ ଭାବରେ ସେ ପ୍ରସିଦ୍ଧି ଅର୍ଜନ କରିସାରିଥିଲେ । ବ୍ରିଟିଶ ଭାରତରେ ଜଣେ ପଦସ୍ଥ କର୍ମଚାରୀ ଶ୍ରୀବତ୍ସ ପଟ୍ଟନାୟକଙ୍କର ଜ୍ୟେଷ୍ଠପୁତ୍ର ଭାବରେ ଅଭିଜାତ ପରିବାରରେ ଲାଳିତପାଳିତ ହୋଇ ମଧ୍ୟ ଉଦାର ନୈତିକତା ଓ ମୂଲ୍ୟବୋଧ ତାଙ୍କପାଇଁ ବଡ଼କଥା ଥିଲା । ୧୯୩୭ ମସିହାରେ ଯେତେବେଳେ ତାଙ୍କର 'ମୋର ଚିଠି ଫାଇଲ୍' 'ନବଭାରତ'ରେ ପ୍ରକାଶିତ ହେଉଥିଲା, ସେତିକିବେଳେ ଗଳ୍ପ ମଧ୍ୟ 'ଉତ୍କଳ ସାହିତ୍ୟ', 'ସହକାର'ରେ ପ୍ରକାଶ ଲାଭ କରିଥିଲା । ୧୯୩୬ ମସିହାରୁ ଆରମ୍ଭକରି ପ୍ରାୟ ଦୀର୍ଘ ୪୦ ବର୍ଷକାଳ ଓଡ଼ିଆ ସାହିତ୍ୟରେ ତାଙ୍କର ସୃଜନୀଶକ୍ତିର ବିଚାର ବିମର୍ଶ ଭିତରେ ତାଙ୍କ ସ୍ୱାଭିମାନର ବାହାଦୂରୀ ଅଛି । ଜ୍ୟୋତି ମଧ୍ୟ ରହିଛି । ସାଧାରଣ ଭାବରେ ଜଣେ ବ୍ୟକ୍ତି ହିସାବରେ ସେ ଯେପରି ଭିନ୍ନ ରୁଚିର ମନେହୁଅନ୍ତି, ଜଣେ ସାହିତ୍ୟିକ ଭାବରେ ସେ ମଧ୍ୟ ସେପରି ପୃଥକ୍ ସ୍ୱାଦର ସ୍ରଷ୍ଟାଟିଏ ପରି ଜଣାପଡ଼ନ୍ତି । ତେଣୁ, ତାଙ୍କର ସୃଷ୍ଟି ଅନେକତ୍ର ଦ୍ୱିଧାହୀନ ଓ ସ୍ୱାଭିମାନୀ ହେତୁ ବେପରୁଆ ସ୍ୱାଭିମାନୀ । ୪୦-୪୫ ବର୍ଷଧରି ସେ ଓଡ଼ିଆ ସାହିତ୍ୟରେ ନିଜର ସୃଜନୀଶକ୍ତିର ପରାକାଷ୍ଠା ଦେଖାଇଛନ୍ତି । ପେଶାରେ ଜଣେ ବିଚାରକ ହେଲେ ହେଁ ତାଙ୍କ କୃତିଗୁଡ଼ିକୁ ବିଚାର କଲେ ମନେହୁଏ, ସତେଯେପରି ତାଙ୍କ ଅନ୍ତର ମଧ୍ୟରେ ଭରିରହିଛି ଏକ ସୃଜନଶୀଳ ଆବେଗ । ତାଙ୍କ ଗଳ୍ପସବୁ 'ତୁଠ ପଥର', 'ହୃଦୟର ବନ୍ଧନ', 'ପଥୁକି', 'ନିଶାଣଖୁଣ୍ଟ', 'ଶାଳଗ୍ରାମ', 'କଳ୍ପନାର ଫୁଲ', 'ପଥର ଓ ଡ଼ିମା', 'ହାଟସଉଦା' ଓ 'ହାଟବାହୁଡ଼ା', 'ଅଡୁଆ ସୂତା' ପ୍ରଭୃତିରେ ଜୀବନବୋଧ ରାଜକିଶୋରଙ୍କ କଥାମାନସର ବିଶେଷତ୍ୱ । ସ୍ୱାଧୀନତା ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ଓଡ଼ିଆ ସମାଜ ଜୀବନର ଚିତ୍ର ସହ ମାନବୀୟ ଜୀବନଯନ୍ତ୍ରଣାର ଚିତ୍ର ବେଶ୍ ଫୁଟାଇପାରିଛନ୍ତି । ତାଙ୍କ ସୃଷ୍ଟିରେ ଉପାଦାନ ହୋଇଛି ସମକାଳନୀ ଆଧୁନିକ ମଣିଷର ଜୀବନ । ତାଙ୍କ ଗଳ୍ପଗୁଡ଼ିକରେ ରହିଛି ମଣିଷକୁ ବିବେକୀ ଓ ବିଚାରବନ୍ତ କରି ଗଢ଼ିତୋଳିବାର ଏକ ଅନ୍ତରଙ୍ଗ ସ୍ୱପ୍ନ । ସମସାୟିକ ସ୍ଥିତାବସ୍ଥାକୁ ସେ ଘୃଣା କରିଛନ୍ତି, ଅବିଶ୍ୱାସ କରିଛନ୍ତି । ବିଶେଷକରି ବାସ୍ତବ ଜୀବନର ନିଖୁଣ ସତ୍ୟକୁ ପ୍ରକାଶ କରିବାବେଳେ ତାଙ୍କ ହୃଦୟ ଭିତରୁ ଏକ ରୁଦ୍ଧ ଭାବୋଚ୍ଛ୍ୱାସ, ବ୍ୟାକୁଳତା ହୋଇଛି ତାଙ୍କ ଗଳ୍ପର ବିଷୟ ବା କଥାବସ୍ତୁ । ଏକ ତୀକ୍ଷ୍ଣଶୈଳୀର ପ୍ରୟୋଗ କରି ଗଳ୍ପ ସୃଷ୍ଟି କରିଛନ୍ତି । ତେଣୁ, ତାଙ୍କ ଗଳ୍ପଗୁଡ଼ିକର ଅନ୍ତଃସ୍ୱର ଉନ୍ମୁକ୍ତ ଓ ନିର୍ଭୀକ । ତାଙ୍କର ଗଳ୍ପ 'ଘାସ' ଓ ଉପନ୍ୟାସ 'ଚଲାବାଟ' ଉଲ୍ଲେଖନୀୟ ଅବଦାନ ରହିଛି କଥାସାହିତ୍ୟ ଜଗତରେ । 'ଚଲାବାଟ' ଉପନ୍ୟାସ ଓଡ଼ିଆ କଥାସାହିତ୍ୟରେ ଚେତନା ପ୍ରବାହ ପରମ୍ପରାର ଶ୍ରେଷ୍ଠ ପ୍ରତିନିଧି କହିଲେ ଅତ୍ୟୁକ୍ତି ହେବନାହିଁ । ମଣିଷ ମନର ଚିନ୍ତାଚେତନା, ଗତିପ୍ରକୃତି, ସବୁକୁ ଓ ସମସ୍ତ ରହସ୍ୟକୁ ସେ ଉଦ୍‌ଘାଟନ କରିଛନ୍ତି ତାଙ୍କ ସୃଷ୍ଟିମାନଙ୍କରେ ତାଙ୍କ ସୃଷ୍ଟିରେ ଜୀବନର ସ୍ପନ୍ଦନ ସବୁଠି । ଏଠି ପ୍ରତାରିତା ପ୍ରିୟା ଜୀବନ ହରାଏନା ବରଂ ଝୁରି ମରେ । ପ୍ରତିଶୋଧ ନେବା ପରିବର୍ତ୍ତେ ଜୀବନର ରାହା ଖୋଜେ । ଯଥାର୍ଥରେ ତାଙ୍କ ସୃଷ୍ଟିର ଉପାଦାନ ହେଉଛି ସମକାଳୀନ ଆଧୁନିକ ମଣିଷର ଜୀବନ ।

'ଘାସ' ଗଳ୍ପ ମଧ୍ୟରେ ଗଭୀର ଜୀବନବୋଧର ସାର୍ଥକ ଅଭିବ୍ୟକ୍ତି ଉପଲବ୍ଧ ହୁଏ । ଦରିଦ୍ର ବଢ଼େଇ ପିଲା 'ଲିଙ୍ଗା' ଦାରିଦ୍ର୍ୟର କଷାଘାତରେ ଖୁବ୍ ନିଷ୍ପେସିତ ହୋଇଛି; କିନ୍ତୁ, ପରିସ୍ଥିତିର ଚାପରେ ସେ ଭାଙ୍ଗିପଡ଼ିନି । ମନରେ ତାର ମଣିଷ ହେବାର ନିଶା ଜାଗିଉଠିଛି । ମଣିଷପରି ମଣିଷଟିଏ ହୋଇ ଛିଡ଼ାହେବ ସେ ସମାଜର ଛାତି ଉପରେ । ଦିନକୁ ଗୋଟିଏ ଓଳି ପେଟପୂରା ଖାଇବାକୁ ତାକୁ ଜୁଟିନି । ସେଇ ପଇସାରେ ଆଠଘଣ୍ଟା ଖଟିଛି, ହେଲେ ଭାଙ୍ଗିପଡ଼ିନି । ତା'ର ଦୃଢ଼ ମନୋବଳ ଓ ଜୀବନ ସଂଗ୍ରାମ ଭିତରେ ସେ ଆଗେଇଛି । ଅଭାବ ତା'ର ପଥରୋଧ କରିପାରିନି । ଅସରନ୍ତି ଆଶା ନେଇ ଆଗକୁ ଆଗେଇଛି । ରାସ୍ତାକଡ଼ର ଦୁବଘାସ ଲୋକଙ୍କ ପାଦରେ ଦଳିମକଚି ହୋଇଯାଇଛି । ଗାଈଗୋରୁଙ୍କର ପାକୁଳି ଭିତରେ ନିଶ୍ଚିହ୍ନ ହୋଇଯାଇଛି । ତଥାପି ମରିନି । ବଞ୍ଚି ରହିଛି । ଜୀବନର ଯେତେ ପ୍ରତିକୂଳ ପରିସ୍ଥିତି ଭିତରେ ଫୁଟ୍‌ପାଥର ଦରିଦ୍ର ବାଳକଟିଏ ହେଲେ ବି ସେ ଟଳିପଡ଼ିନି । 'ଘାସ' ଦେହରେ ମାନବଜୀବନ ଦର୍ଶନର ଯଥାର୍ଥ ଆରୋପଣ କରିଛନ୍ତି ଲେଖକ । ତେଣୁ ଲେଖକଙ୍କର ଜୀବନୋନ୍ମୁଖୀ ଚେତନା ଏଠାରେ ପରିଲକ୍ଷିତ ହୁଏ ।

ମଣିଷର ଜୀବନ ଯନ୍ତ୍ରଣାମୟ ଯନ୍ତ୍ରଣାକୁ ବାଦ୍‌ଦେଇ ଜୀବନର ମାନେ କିଛି ହୁଏନା । ଜୀବନର ପଥ କଣ୍ଟକିତ ଅମଡ଼ାବାଟ । ସେହି ଅମଡ଼ାବାଟକୁ ଚଲାବାଟରେ ପରିଣତ କରିବାକୁ ମଣିଷ କକ୍ଷଚ୍ୟୁତ ହୋଇ ଘୂରିବୁଲୁଥିଲା । ଏଠାରେ ହାରିଯିବାକୁ ହୁଏ । ଜିତ୍‌ର ପ୍ରଶ୍ନ ଉଠେନା । ଏଥିପାଇଁ ନାୟକ ଅମରେନ୍ଦ୍ର ଓ ନାୟିକା ରୀତାଙ୍କ ଧାଁ ଦୌଡ଼ ଭିତରେ ସେହି ବିଡ଼ମ୍ବନା ବିପର୍ଯ୍ୟୟ ଅଭିମାନ ଓ ଅହଂକାର ହିଁ ସେମାନଙ୍କ ଜୀବନକୁ ନିଷ୍ଫଳ, ନିରର୍ଥକ କରିଦେଇଛି । ଚଲାବାଟ ପାଲଟିଯାଇଛି ଅସରା, ଅପନ୍ତରା, ପ୍ରେମ ହୋଇଛି ପଥର ଅନ୍ତରାୟ । ଜୀବନକୁ କରିଛି ବେଦନାକ୍ତ ଦୁଇଟି ବିଦଗ୍ଧ ଆତ୍ମା, ହା ହୁତାଶ ମଧ୍ୟରେ ଜଳି ନିଃଶେଷ ହୋଇଯାଇଛି । ତା'ହେଲେ ଜୀବନର ସାର୍ଥକତା କ'ଣ? ମମତାସିକ୍ତ ଦାମ୍ପତ୍ୟ ଜୀବନ ପରିଣତ ହୋଇଛି ଜ୍ୱାଳାମୟ କାରୁଣ୍ୟରେ । ଉପନ୍ୟାସଟି Flashback ଶୈଳୀରେ ରଚିତ । ସେହିଭଳି 'କଜଳଗାର', 'ସକାଳ କୁହୁଡ଼ି', "ପତ୍ର ଉପନ୍ୟାସ', 'ପଞ୍ଜୁରୀ ପକ୍ଷୀ', 'ପ୍ରେମିକର ଡାଇରୀ', 'ପ୍ରୀତିର ବଣିଜ' ଏବଂ ତାଙ୍କର ପରିଣତ ବୟସର ସୃଷ୍ଟି' 'ରାସ୍କେଲ' ଆଦି ଉପନ୍ୟାସରେ ଜୀବନର ସ୍ଥିତି ଯନ୍ତ୍ରଣାକ୍ଷ ଓ ସାଂସାରିକ କର୍ମମୟ ସଂଗ୍ରାମ ଭିତରେ ରହିଛି । ରାସ୍କେଲ ଏକ ପ୍ରତୀକଧର୍ମୀ ଉପନ୍ୟାସ ।

ରାଜକିଶୋରଙ୍କ ଭାଷାରେ ମଣିଷ ଯେତେବେଳେ ମଣିଷଠାରୁ କୌତୁହଳ ହରାଏ, ସେତେବେଳେ ସେ ଦୃଷ୍ଟି ଫେରାଏ ପଶୁପକ୍ଷୀଙ୍କ ଆଡ଼କୁ । ମାନବର ଚିନ୍ତାଧାରା, ବିଚାରଧାରା, ନିଃସ୍ୱାର୍ଥପରତା ପରି ମାନବେତର ଚରିତ୍ରର ମହନୀୟତା ଯୁଗେଯୁଗେ ଆକୃଷ୍ଟ କରିଛି ଶିଳ୍ପୀ ପ୍ରାଣକୁ ।

ବିଶ୍ୱସାହିତ୍ୟର ବରେଣ୍ୟ କଥାକାର ଏଡ୍‌ଗାର ଆଲାନ୍ ପୋ, ମୋପାଁସା, ଚେକଭ୍ ପ୍ରଭୃତିଙ୍କୁ ବାଦ୍ ଦେଲେ ଓଡିଆ ସାହିତ୍ୟରେ ମଧ ଏହାର ଦୃଷ୍ଟାନ୍ତ କମ୍ ନୁହେଁ; କାଳିନ୍ଦୀଚରଣଙ୍କ 'ମାଂସର ବିଳାପ', ମନୋଜ ଦାସଙ୍କ 'ବିଲେଇ', ଅଖିଳମୋହନଙ୍କ 'ଝଡ଼ର ଇଗଲ ଓ ଧରଣୀର କୃଷ୍ଣସାର', ଚନ୍ଦ୍ରଶେଖର ରଥଙ୍କର 'ଉଠ୍ ଭୁବନେଶ୍ୱର', ଅଚ୍ୟୁତାନନ୍ଦ ପତିଙ୍କର 'ଅଶୁଭ ପୁତ୍ରର କାହାଣୀ', ମହାପାତ୍ର ନୀଳମଣି ସାହୁଙ୍କର 'ଅନ୍ଧରାତିର ସୂର୍ଯ୍ୟ', ରାମଚନ୍ଦ୍ର ବେହେରାଙ୍କର 'ଅବଶିଷ୍ଟ ଆୟୁଷ' ଆଦି ଗଳ୍ପଗୁଡ଼ିକରେ ପଶୁ ଚିତ୍ତବୃତ୍ତି ମଧ୍ୟଦେଇ ମଣିଷର ଅବଦମିତ ରହସ୍ୟ ଉଦ୍‌ଘାଟିତ । ସେଥିପାଇଁ କେବଳ ମାନବୀୟ ସମ୍ବେଦନଶୀଳତା ନୁହେଁ । ମାନବେତର ସମ୍ପର୍କ ପ୍ରତି ରାଜକିଶୋର ପଟ୍ଟନାୟକଙ୍କର ଆକର୍ଷଣ ଖୁବ୍ ବେଶୀ । ତାଙ୍କ ମତରେ ଯେତେବେଳେ ମଣିଷଠାରୁ କୌତୁହଳ ହରାଏ, ସେତେବେଳେ ସେ ଦୃଷ୍ଟି ଫେରାଏ ମଣିଷଠାରୁ ପଶୁପକ୍ଷୀଙ୍କ ଆଡ଼କୁ । ତାଙ୍କ ରଚିତ ପୁରୁଣାକଥା, ମୂକ, ଯୁଗଧର୍ମ, ଦ୍ୱନ୍ଦ୍ୱ, ପ୍ରତିଦାନ, ସୁଲତାନ, ମୁର୍ଖ, ଭଡ଼ାଘର, ନୀଡ଼ଠକ, କଳ୍ପନାର ଫୁଲ ଏବଂ ପଶୁ ପ୍ରଭୃତି ଗଳ୍ପଗୁଡ଼ିକରେ ଉଭୟ ରୋମାଣ୍ଟିକ୍ ଓ ବୈପ୍ଳବିକ ସ୍ୱରସହ ସମ୍ବେଦନଶୀଳ ମାନବବାଦୀ ଚିନ୍ତାଧାରା ରହିଛି । କୁକୁର, ବିଲେଇ, ବୁଢ଼ିଆଣୀ, ଷଣ୍ଢ, ଘରଚଟିଆ ପ୍ରଭୃତି ତାଙ୍କ ଗଳ୍ପର ବିଷୟ ଓ ଚରିତ୍ର । ଏତଦ୍‌ବ୍ୟତୀତ ଗଛ ଓ ଘର ପ୍ରଭୃତିରେ ମାନବିକାତ୍ୱର ଆରୋପ ତାଙ୍କ ଲେଖନୀକୁ ଜୀବନ୍ତ କରି ଗଢ଼ି ତୋଳିଛି । ତାଙ୍କର ଉତ୍କୃଷ୍ଟ ଗଳ୍ପଗୁଡ଼ିକ ମାନବେତର ଚରିତ୍ରକୁ ନେଇ ସୃଷ୍ଟ । ମାନବ ଇତର ଚରିତ୍ରଙ୍କୁ ନେଇ ଗଳ୍ପ ରଚନା କରିବାରେ ରାଜକିଶୋରଙ୍କର ଦକ୍ଷତା ଅଛି ନିପୁଣତା ମଧ ରହିଛି । ଓଡ଼ିଆ କ୍ଷୁଦ୍ରଗଳ୍ପ କ୍ଷେତ୍ରରେ ଏଥିପାଇଁ ସେ ଏକ ସ୍ୱତନ୍ତ୍ର ଗୌରବର ଅଧିକାରୀ । କଥାକାର ରାଜକିଶୋର କହନ୍ତି –

୧. ମଣିଷ ଖାଲି କାନରେ ଶୁଣେ ନାହିଁ । ମନରେ ବି ସେ ଉତ୍ତର ପାଏ । ଆଖି କାନରେ ଶୁଣେ ନାହିଁ; ଶୁଣିପାରେ; ସେଥିପାଇଁ ତାକୁ କୁହାଯାଏ, ମଣିଷ ।(ବୁଢ଼ିଆଣୀ ସୂତା ହାଟ ବାହୁଡ଼ା ଗଳ୍ପ ସଂକଳ୍ପ)
୨. ବୁଝିଲ ଜୁନ୍ – ସଂସାରରେ ଯେ ମୂକ ହୋଇରହେ, ସେ ସମସ୍ତଙ୍କଠାରୁ ଏମିତି ଗୋଇଠା ଖାଏ । (ମୂକ, ନିଶାଣଖୁଣ୍ଟ, ଗଳ୍ପ ସଂକଳନ)
୩. ଚାକରର ସ୍ଥାନ ସବୁଦିନେ ଏମିତି ପଦାରେ । ଯେଉଁ ମିସ୍ତ୍ରୀ ଘର ତିଆରି କରେ, ଯେଉଁ ଗୁଡ଼ିଆ ମିଠେଇ ଛାଣେ, ସେମାନେ ସେତିକି ଭୋଗ କରନ୍ତି ନାହିଁ । କର୍ମୀ ଦେଶକୁ ଗଢ଼ିଯାଏ – ନେତା ହୁଏ ସେଠା ରାଜା । ଚାକର ଯାହା କରୁନା କାହିଁକି ଘରର ଚାକର । (ମୂକ, ନିଶାଣଖୁଣ୍ଟ, ଗଳ୍ପ ସଂକଳନ)

ମଣିଷର ଚାରିତ୍ରିକତା ସହ ମାନବେତର ଅସହାୟତାର ତୁଳନାତ୍ମକ ବିଚାର ବାସ୍ତବ ଓ ଜୀବନଧର୍ମୀ । ବୌଦ୍ଧିକ ବିଶ୍ଳେଷଣର ପନ୍ଥା ଏଡ଼ାଇ ବ୍ୟଙ୍ଗାତ୍ମକ ଶୈଳୀ ଏଠି ପ୍ରାଧାନ୍ୟ ପାଇଛି । ତଥାପି ସୁଦ୍ଧା ନିରୀହ ପଶୁର ଜୀବନ ସମ୍ପର୍କିତ ଅନେକ ପ୍ରଶ୍ନବାଚୀ ତାଙ୍କ ଗଳ୍ପ ସବୁରେ ଉତ୍ଥାପିତ ବିଶ୍ଳେଷିତ ଓ ସମାହିତ।

ବିଶିଷ୍ଟ କଥାକାର ନିତ୍ୟାନନ୍ଦ ମହାପାତ୍ର ରାଜକିଶୋରଙ୍କ ବ୍ୟକ୍ତିତ୍ୱ ଉପରେ ଅଧୁନାରେ କହିଥିଲେ "ରାଜୁବାବୁ ସାଲିସ କରିବାପାଇଁ ଏକାବେଳକେ ନାରାଜ" । ଏଇ ପଦକ କଥା ଭିତରେ ତାଙ୍କୁ ଗୋଟିପଣେ ଦେଖିହେବ, ଯାହା ଅନ୍ୟାୟ ଅରୁଚିକର ଅଯଥା, ଅପ୍ରାସଙ୍ଗିକତା ସହିତ ସାଲିସ୍ ନାସ୍ତି ।

ତାଙ୍କୁ ଏପରି ଏକ ବିଚିତ୍ର ମଣିଷ ଓ ବିଚିତ୍ର ଲେଖକ ଭାବରେ ଗଢ଼ି ତୋଳିବାପାଇଁ ପରିବେଶ ଓ ପରିସ୍ଥିତି ବାଧ୍ୟ କରିଛି । ସେ ସମୟରେ ଭଞ୍ଜନଗର ନିବାସୀ ଶ୍ରୀବତ୍ସ ପଟ୍ଟନାୟକଙ୍କର ଜ୍ୟେଷ୍ଠ ସନ୍ତାନ ଏରସମାନିବାସୀ ସୁନ୍ଦରମଣି ଦେବୀ ତାଙ୍କର ମାଆ । ଦୁଇଜଣଯାକ ଶିକ୍ଷିତ ଓ ସଭ୍ୟ ସମାଜର ମଣିଷ । ତାଙ୍କର ବାପା ଶିଳ୍ପ ଇଞ୍ଜିନିୟର ଥିଲେ । ବିହାର ଓଡ଼ିଶା ସରକାରଙ୍କର ଅଧୀନରେ ସେ ଥିଲେ କର୍ମଚାରୀ । ୧୯୩୭ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲାପରେ ସେ ଓଡ଼ିଶା ଆସିଲେ । ୧୯୩୭ ମସିହାରେ ଏବଂ କଟକରେ ସ୍ଥାୟୀ ଭାବରେ ବସବାସ କଲେ । ଶ୍ରୀବତ୍ସଙ୍କର ପ୍ରଥମ ସନ୍ତାନ ଥିଲେ ରାଜକିଶୋର, ହାରାଧନ ଘୋଷ ଓ ବୈକୁଣ୍ଠ ପଟ୍ଟନାୟକଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରାଜକିଶୋର ନିଜକୁ ଗଢ଼ି ତୋଳିଥିଲେ। ସେହି ସ୍କୁଲରେ ବିଜୁ ପଟ୍ଟନାୟକ ଓ ଜର୍ଜ ପଟ୍ଟନାୟକ ମଧ ପଢୁଥିଲେ । ମାଟ୍ରିକ୍ ପରେ ଆଇଏସି, ବିଏସି ଏବଂ ପରେ ପରେ ଓକିଲାତି ଓ ତା'ପରେ ହୁଏ ଓକିଲାତି ବ୍ୟବସାୟ ।

ଆଗରୁ କୁହାଯାଇଛି ଯେ ତାଙ୍କ ଲେଖକ ଜୀବନର ଆରମ୍ଭ ହୁଏ ୧୯୩୪ରୁ 'ମିଷ୍ଟିକ୍ ଅଫ୍ କୋର୍ଟ ଅଫ୍ ଲଣ୍ଡନ' ଛାୟାରେ ଏକ ଉପନ୍ୟାସ ରଚନା କରନ୍ତି । ୧୯୩୬ରେ ଲେଖନ୍ତି 'ପଥର' ଗଳ୍ପ । ନବଭାରତରେ ପ୍ରକାଶିତ 'ମୋ ଚିଠି ଫାଇଲ' ତାଙ୍କ ଦେଖି ପ୍ରତିଷ୍ଠିତ କରିପାରିଥିଲା । ୧୯୩୮ରେ ସେ ହାତ ଦିଅନ୍ତି ପ୍ରଥମ ପ୍ରକାଶିତ ବହୁ ପ୍ରଶଂସିତ ଉପନ୍ୟାସ 'ସିନ୍ଦୁରଗାର' ଉପନ୍ୟାସରେ । ଏହାପରେ ପରେ ଅସରନ୍ତି ଉପନ୍ୟାସ ଲେଖନ୍ତି ୧୯୩୯ ସ୍ମୃତିର ମଶାଣି, ୧୯୫୨ ଭସାମେଘ, ୧୯୫୧ ମସିହାରେ 'ପ୍ରେମିକର ଡାଏରୀ', ୧୯୫୮ ରେ 'କଳାପରଦା', ୧୯୭୭ରେ 'ପ୍ରୀତିର ଦର୍ଶକ' ପ୍ରକାଶ ପାଏ । 'ସପନ କୁହୁଡ଼ି' ଓ 'ସକାଳ କୁହୁଡ଼ି' ମଧ ତାଙ୍କର ଅନ୍ୟତମ ଉପନ୍ୟାସ । ତାଙ୍କର ଗଳ୍ପଗୁଡ଼ିକ 'ତୁଠପଥର' ଓ 'ପଥୁକୀ' ମାଟ୍ରିକ ଶ୍ରେଣୀର ପିଲାଙ୍କ ପାଇଁ 'ଶାଳଗ୍ରାମ' ଓ 'ନିଶାଣଖୁଣ୍ଟ', ଆଇ.ଏ. ପିଲାଙ୍କ ପାଇଁ ପାଠ୍ୟକ୍ରମ ରୂପେ ନିର୍ବାଚିତ ହୋଇଥିଲା 'ଘାସ' ଗଳ୍ପ ଆଦି ଓଡ଼ିଆ ଏମ୍‌ଏ ଶ୍ରେଣୀର ପାଠ୍ୟକ୍ରମ ଭାବରେ ରହିଛି ।

ରାଜକିଶୋର କେବେଳ ଯେ, ଜଣେ ଗାଳ୍ପିକ ବା ଔପନ୍ୟାସିକ ତାହା ନୁହେଁ ସେ ଜଣେ ସଫଳ ସମ୍ବାଦିକ, ସମ୍ପାଦକ ଓ ସମାଲୋଚକ ମଧ । ତାଙ୍କର ସମାଲୋଚନା ପୁସ୍ତକ 'ଲେଖକ ଓ ପାଠକ', 'ଓଡ଼ିଆ ସାହିତ୍ୟର ଆଗପଛ' ପାଠକଲେ ଏହି ସତ୍ୟ ଉଦ୍‌ଘାଟିତ ହୁଏ । 'ଲେଖକ ଓ ପାଠକ' ସମାଲୋଚନା ଗ୍ରନ୍ଥଟିର ପ୍ରଥମ ଭାଗ ୧୯୭୧ ମସିହାରେ ପ୍ରକାଶିତ ହୋଇଥିଲା । ଏକାଧିକ ଖଣ୍ଡରେ ସରିବ ବୋଲି, ପୁସ୍ତକର ଆଦ୍ୟକଥନରେ ସୂଚନା ଦିଆଯାଇଥିଲା । ଗ୍ରନ୍ଥାକାରଙ୍କର ସ୍ୱୀକାରୋକ୍ତି ଅନୁସାରେ ଏହି ପୁସ୍ତକଟି ଆଲୋଚନାର ପ୍ରଚଳିତ ଧାରାଠାରୁ ଏକ ବ୍ୟତିକ୍ରମ । ପୁସ୍ତକଟିର ଲେଖକ ପରିଚୟରୁ ଜଣାଯାଏ 'ନୂଆ କଥାପାଇଁ ସଂଗ୍ରାମ କରିବା' ରାଜକିଶୋରଙ୍କ ମନର ଗତି ଓ ଅଭିମୁଖ୍ୟ ଓଡ଼ିଆଙ୍କର ସାହିତ୍ୟ ଓଡ଼ିଆ ପାଇଁ ହେଉ । ଦୀର୍ଘ ବର୍ଷର ଲେଖକ ଜୀବନର ତିକ୍ତ ମଧୁର ଅନୁଭୂତିର ସ୍ୱାଭାବିକ୍ ପରିପ୍ରକାଶ ଘଟିଛି ଏହି ପୁସ୍ତକଟିରେ । ଏହି ସମାଲୋଚନା ପୁସ୍ତକ

ମାଧ୍ୟମରେ ତାଙ୍କର ସାହିତ୍ୟ ଜଗତକୁ ବାର୍ତ୍ତା ହେଉଛି ଓଡ଼ିଆ ସାହିତ୍ୟର ଉଦାର ପୃଷ୍ଠପୋଷକ ତଥା ସହୃଦୟ ପାଠକଙ୍କୁ ଗଠନମୂଳକ ବିଚାରବିମର୍ଶ ପାଇଁ ବହୁ ଉପାଦେୟ ଉପାଦାନ ଯୋଗାଇଥାଏ ।

ସମ୍ପାଦକ ଓ ସାମ୍ବାଦିକ ଭାବେ ୧୯୫୨ ମସିହାରେ ଇଂରାଜୀ ଭାଷାରେ ସ୍କୁଟିନ, ୧୯୭୧ ମସିହାରେ 'ଓଡ଼ିଶାରେ ଆମର ଆଇନ୍' ଏବଂ ଓଡ଼ିଆରେ ପାକ୍ଷିକ ଓ ଦୈନିକ 'ପାଠଚକ୍ର' ପତ୍ରିକା ପ୍ରକାଶ କରି ସେ ତାଙ୍କ ଦକ୍ଷତାର ପରିଚୟ ପ୍ରଦାନ କରିଛନ୍ତି । 'Cuttack Law Notes' ସାପ୍ତାହିକ ମଧ ପ୍ରକାଶ କଲେ । ଦୈନିକ ପାଠଚକ୍ର ଓ 'Cuttack Law Notes' ପ୍ରକାଶ କରି ସାମାଜିକ ରାଜକିଶୋର ସ୍ୱାଧୀନ ସାମ୍ବାଦିକତାର ସ୍ୱରୂପ ବିଷୟରେ ଓଡ଼ିଶାର ଜନସାଧାରଣଙ୍କୁ ଜଣାଇଲେ । ଓଡ଼ିଶାରେ ଜଣେ ନିର୍ଭୀକ ସାମ୍ବାଦିକ ଓ ସମ୍ପାଦକ ଭାବରେ ମଧ ସେ ବେଶ୍ ପରିଚିତ ।

୧୯୪୭ରୁ ୧୯୫୨ ପର୍ଯ୍ୟନ୍ତ ସେ ମଧୁସୂଦନ ଆଇନ୍ କଲେଜରେ ଅଧ୍ୟାପକ ଭାବରେ ଯୋଗ ଦିଅନ୍ତି । ତାହା ମଧ ସ୍ଥାୟୀ ହୋଇପାରି ନାହିଁ । ୧୯୫୨ ଛାତ୍ର ଆନ୍ଦୋଳନରେ ଛାତ୍ରନେତ୍ରୀ ନନ୍ଦିନୀ ଶତପଥୀଙ୍କ ଉପରେ ପୋଲିସ୍ ଅତ୍ୟାଚାରର ପ୍ରତିବାଦ କରି ରାଜକିଶୋର ପଟ୍ଟନାୟକ ଇସ୍ତଫା ପ୍ରଦାନ କରିଥିଲେ । ସେ ସବୁବେଳେ ସ୍ୱାଧୀନ ଓ ରୋକ୍‌ଠୋକ୍; ୧୯୪୮ରେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପ୍ରାର୍ଥୀ, ୧୯୬୫ରେ ରାଜ୍ୟସଭା ପାଇଁ ପ୍ରାର୍ଥୀ, ୧୯୬୩ରେ ସାହିତ୍ୟ ଏକାଡ଼େମୀର ସଦସ୍ୟ ଓ ୧୯୬୪ରୁ ୬୫ ପର୍ଯ୍ୟନ୍ତ ସ୍ୱତନ୍ତ୍ର ଦଳର ଅଫିସ୍ ସେକ୍ରେଟାରୀ ସେ ଐତିହାସିକ ପଦକ୍ଷେପ ନେଇଛନ୍ତି । ପାଟଣା ମହାରାଜା ରାଜେନ୍ଦ୍ର ନାରାୟଣ ସିଂ ଦେଓଙ୍କ ସହିତ ମନୋମାଳିନ୍ୟ ହେତୁ ସ୍ୱତନ୍ତ୍ର ଦଳ ତ୍ୟାଗ କରି ନିଜର ସ୍ୱକୀୟ ଚିନ୍ତାଧାରାର ବଳିଷ୍ଠ ପରିଚୟ ପ୍ରଦାନ କରିଛନ୍ତି ।

ଜୀବଦ୍ଦଶାରେ ସ୍ୱୀକୃତି ବା ସମ୍ବର୍ଦ୍ଧନା ନ ପାଇଥିଲେ ହେଁ ତାଙ୍କ ସମକାଳୀନ ଓ କନିଷ୍ଠମାନେ ବହୁ ଉଚ୍ଚ ପଦାଧିକାରୀ ହେଲେ ମଧ ତାଙ୍କୁ ସମ୍ମାନ କରନ୍ତି । ଓଡ଼ିଆ ସାହିତ୍ୟରେ ସେ ଜଣେ ସ୍ୱାଭିମାନୀ ମୌଳିକ ସ୍ରଷ୍ଟା ଭାବରେ ଆସୀନ । ତାଙ୍କୁ ବାଦ୍ ଦେଇ ଓଡ଼ିଆ କଥାସାହିତ୍ୟର ସଂପୂର୍ଣ୍ଣ ଆଲୋଚନା ସମ୍ଭବ ନୁହେଁ । ନିଜସ୍ୱ ସାଧନା ଓ ସୃଷ୍ଟିରେ ସେ ନିଜେ ଭାସ୍ୱର । ସ୍ରଷ୍ଟା ରାଜକିଶୋରଙ୍କ ସମ୍ପର୍କରେ କେତୋଟି ଗୁରୁତ୍ୱପୂର୍ଣ୍ଣ କଥା ଆଲୋଚନା ନିମନ୍ତେ ମୁଁ ଉଚିତ୍ ମଣୁଛି ।

୧. ରାଜକିଶୋର ପଟ୍ଟନାୟକ ଗାଳ୍ପିକ, ଔପନ୍ୟାସିକ, ଓକିଲ -ଏ ସବୁର ଏକ ମିଶ୍ରିତ ପ୍ରକୃତିର ବାସ୍ତବବାଦୀ ମଣିଷ ।

୨. ତାଙ୍କ ଚରିତ୍ରରେ ବିଶେଷତ୍ୱ ହେଲା ସେ ପରଶ୍ରୀକାତର ନୁହଁନ୍ତି । ଅନ୍ୟ ଲେଖକମାନଙ୍କୁ ଈର୍ଷା କରନ୍ତିନାହିଁ । ଅନ୍ୟମାନଙ୍କ ଲେଖା ପଢ଼ନ୍ତି, ଭଲ ଲାଗିଲେ ପ୍ରଶଂସା କରନ୍ତି, ଭଲ ନ ଲାଗିଲେ ରୋକ୍‌ଠୋକ୍ କହିଦିଅନ୍ତି । ପରୀରାଇଜ କଥା ବା କାଳ୍ପନିକ କାହାଣୀ ନ କହି ନିଜର ସ୍ୱତନ୍ତ୍ରତା ବଜାୟ ରଖନ୍ତି ।

୩. ତାଙ୍କ ଗଳ୍ପର ନାମକରଣ ଯେକୌଣସି ପାଠକର ଦୃଷ୍ଟିଆକର୍ଷଣ କରିଥାଏ । ତାଙ୍କ ଗଳ୍ପର ନାମକରଣରେ ସୃଷ୍ଟିଧର୍ମୀତା ରହିଛି । ସରଳ ନାମକରଣ ହେତୁ ତାଙ୍କ ଗଳ୍ପସାହିତ୍ୟ ପ୍ରତି ପାଠକଙ୍କର ଉତ୍କଣ୍ଠା ବେଶୀ । କଟକ ଭୁବନେଶ୍ୱର ପରିବେଶ ସମେତ କଟକର ନଦୀ, ଘାଟ, ପେଣ୍ଠ, ଗଛ ଷଣ୍ଢଠାରୁ ଆରମ୍ଭ କରି ବେକାର ଭିକାରୀ, କର୍ମଚାରୀ ପର୍ଯ୍ୟନ୍ତ ତାଙ୍କ ଗଳ୍ପରେ ମର୍ମସ୍ପର୍ଶୀ ଭାବରେ ବର୍ଣ୍ଣିତ ।

୪. ସଂଳାପ ବାସ୍ତବ ଓ ପାତ୍ରୋପେଯାଗୀ ।

୫. କଥାଶିଳ୍ପୀ ରାଜକିଶୋରଙ୍କ ଉପରେ ମାୟାଧର ମାନସିଂ କହନ୍ତି – "ଆଡ଼ଭୋକେଟ୍ ରାଜକିଶୋର ପଟ୍ଟନାୟକ ଓ ତାଙ୍କର ସୁଶିକ୍ଷିତା ଭଗ୍ନୀ ବସନ୍ତ କୁମାରୀ ଯେପରି ନିଷ୍ଠାପରତାର ସହିତ ମାତୃଭାଷାର ସେବା କରିଆସିଛନ୍ତି, ସେଥିପାଇଁ ସେ ଭାଇଭଉଣୀ ଦୁହେଁ, ପ୍ରତ୍ୟେକ ଓଡ଼ିଆଠାରୁ ପ୍ରଶସ୍ତି ଦାବୀ କରିପାରନ୍ତି । ଦିହେଁ ଗଣ୍ଡା ଗଣ୍ଡା ଗଳ୍ପ ଉପନ୍ୟାସ ଲେଖି ଛାପିଛନ୍ତି ନିଜ ଖର୍ଚ୍ଚରେ ।

ଏଇଠି ସୂଚନା ଦେବା ଉଚିତ ମନେ କରୁଛି ଯେ ନିଜ ରଚନା ସବୁ ପ୍ରକାଶ ନିମନ୍ତେ ପ୍ରକାଶକମାନଙ୍କ ପଛରେ ନ ଗୋଡ଼ାଇ ଭଗିନୀ ବସନ୍ତ କୁମାରୀଙ୍କ ସହେଯାଗିତାରେ 'ଶାନ୍ତିନିବାସ ବାଣୀ ମନ୍ଦିର' ନାମରେ ପ୍ରକାଶନ ସଂସ୍ଥାଟି କରି (୧୯୫୮) ନିଜର ପୁସ୍ତକ ସହ ଅନ୍ୟ ଲେଖକମାନଙ୍କର ପୁସ୍ତକ ମଧ ସେ ଛାପୁଥିଲେ ।

ଥରେ ପ୍ରଫେସର ଜାନକୀ ବଲ୍ଲଭ ମହାନ୍ତି ତାଙ୍କୁ କହିଥିଲେ ଏତେସବୁ ଲେଖୁଛନ୍ତି ନିଜ ବୃତ୍ତିକୁ ନେଇ କିଛି ଲେଖନ୍ତୁ । କିଛିଦିନ ପରେ କଳାପରଦା ପ୍ରକାଶ ପାଇଲା । ବହିରେ ବିଚାରାଳୟଜୀବୀ ଅର୍ଥାତ୍ ଓକିଲ, ମୋହରିର, ମହକିଲ, ପେସ୍କାର ପ୍ରଭୃତିଙ୍କର ଜୀବନକୁ ଆଧାରକରି ଏହା ରଚିତ । ଏହାଛଡ଼ା ଏଥିରେ ରିକ୍ସାବାଲା, କୃଷକ, ପିଅନ, ଚପରାଶୀ, ପାନ ଦୋକାନୀ ପ୍ରଭୃତି ସମାଜର ଶୋଷିତ ତଥା ନିମ୍ନବର୍ଗର କେତୋଟି ବ୍ୟକ୍ତିଙ୍କର ଖଣ୍ଡିତ ଚିତ୍ର ପରିଲକ୍ଷିତ ହୁଏ । କେତେ ଜଣ ବ୍ୟକ୍ତିଙ୍କର ମାତ୍ର ଗୋଟିଏ ଦିନର କାର୍ଯ୍ୟକଳାପ ଓ ଅନୁଭୂତିର ବିବରଣୀ ହେଉଛି ଏହି ଉପନ୍ୟାସ ।

ରାଜକିଶୋରଙ୍କ କଥା ସାହିତ୍ୟରେ ଏମିତି କାହାଣୀ ରହିଛି ଯାହା ଗଳ୍ପ ନୁହେଁ ବା ପ୍ରବନ୍ଧ ନୁହେଁ । ଗଦ୍ୟ, କବିତା ନୁହେଁ କି ସମାଲୋଚନା ନୁହେଁ ଦୈନନ୍ଦିନ ଲିପି ନୁହେଁ କି ତର୍କବିତର୍କଯୁକ୍ତ ମିମାଂସା ନୁହେଁ । ତାହା ନାଟକୀୟ ଆତ୍ମକଥନ dramatic ବୋଲି ମନେ ହୁଏ । 'ହଟିଆର ହାଟ' ଏହାର ଏକ ଜ୍ୱଳନ୍ତ ଉଦାହରଣ -

'ଯାଉଛି କାମ ଅଛି'

'ହଁ କାମ କ'ଣ ନ ଥାନ୍ତା? ଭାରି ଏକୁଟିଆ ଲାଗୁଛି । ଆଉ ପନ୍ଦର ମିନିଟ୍ ବସିଯାଅ ଭଲ ଲାଗିବ ।

ଏକୁଟିଆ କାହିଁକି?

"ଜାଣି ନାହୁଁରେ ଧୀର, ବୟସ ହୋଇଗଲେ ବୁଝିବୁ ଯେ ମଣିଷ ଭାରି ଏକୁଟିଆ..., ତେବେ ପରବର୍ତ୍ତୀ ପର୍ଯ୍ୟାୟରେ ରାଜକିଶୋରଙ୍କ କଥାସାହିତ୍ୟର ବିଶଦ ଆଲୋଚନା ହେବ ।

**ସହାୟକ ଗ୍ରନ୍ଥସୂଚୀ**

[୧]. କଥାକାର ରାଜକିଶୋର - ରାଜକିଶୋର ଜୟନ୍ତୀ କମିଟି ତରଫରୁ

[୨]. ରବିନାରାୟଣ ମହାପାତ୍ର, ରଘୁନାଥ ମହାପାତ୍ର ଗୋବିନ୍ଦ ଚନ୍ଦ୍ର ଚାନ୍ଦ – ୧୯୯୭

[୩]. ରାଜକିଶୋର ପଟ୍ଟନାୟକଙ୍କ ଗଳ୍ପ ବିଶେଷାଙ୍କ 'ଅଧୁନା' ପତ୍ରିକା, ୪ର୍ଥ ବର୍ଷ, ୬ଷ୍ଠ ସଂଖ୍ୟା, ମାର୍ଚ୍ଚ-ମେ, ୧୯୭୬
[୪]. ରାଜକିଶୋର ପଟ୍ଟନାୟକଙ୍କ ଶ୍ରେଷ୍ଠ ଗଳ୍ପ, ବିଜୟାନନ୍ଦ ସିଂ, ଏନ୍.ବି.ଟି. ଦ୍ୱାରା ପ୍ରକାଶିତ, ୨୦୦୭
[୫]. ରାଜକିଶୋର ପଟ୍ଟନାୟକଙ୍କ ଗ୍ରନ୍ଥାବଳୀ, ସମ୍ପାଦନା ଡ. ବିଜୟାନନ୍ଦ ସିଂ, ଆନନ୍ଦ ପ୍ରକାଶନ, କଟକ
[୬]. ରାଜକିଶୋର ପଟ୍ଟନାୟକ ଏକ ଶ୍ରଦ୍ଧାଞ୍ଜଳୀ, ଆନନ୍ଦ ପ୍ରକାଶନ, କଟକ, ଓଡିଶା ସାହିତ୍ୟ ଏକାଡେମୀ, ୧୯୯୭
[୭].ଓଡ଼ିଆ କ୍ଷୁଦ୍ରଗଳ୍ପ ସ୍ରଷ୍ଟା ଓ ସହୃଦୟ, ଅଗ୍ରଦୂତ, ୨୦୦୭